ସାଧାରଣ ନାଗରିକମାନଙ୍କୁ ? ଜଣେ ନାଗରିକ ତାର ବାକ୍‌ସ୍ୱାଧୀନତା ବ୍ୟବହାର କଲେ ତାହାର ଦଶା କଅଣ ହୁଏ, ଜନତା ସରକାର ମୋର ଦୟନୀୟ ଅବସ୍ଥାରୁ ତାହା ବୁଝିନ୍ତୁ ।

ବଙ୍ଗାଳୀମାନେ ଅନନ୍ତବାସୁଦେବମନ୍ଦିରକୁ କାଗଜରେ ମାରି ନେଇଥିଲେ ଏବଂ ପରେ କାଗଜରେ ତାହା ଫେରାଇଦେଲେ । ଏ ମନ୍ଦିର ଯେଉଁଠାରେ ଥିଲା, ସେହିଠାରେ ସବୁଦିନେ ଅଛି । କିନ୍ତୁ ଓଡ଼ିଶାର ଅସଂଖ୍ୟ ମୂର୍ତ୍ତି ଓ ସ୍ଥାପତ୍ୟାଂଶ ଯେ ସ୍ଥାନାନ୍ତରିତ ହେଲା ବା ଚୋରି ହୋଇଗଲା, ସେସବୁ ଆଉ ଓଡ଼ିଶାକୁ ଫେରିଆସିବ କି ? ବ୍ରିଟିଶ୍ ମିଉଜିୟମ୍ ଲଣ୍ଡନ, ମିଉସିଗାମୁନ୍ ପେରିସ୍, ନେସନେଲ ମିଉଜିୟମ୍ ନୂଆଦିଲ୍ଲୀ, ପାଟନା ମିଉଜିୟମ୍ ପାଟନା, ଇଣ୍ଡିଅନ୍ ମିଉଜିୟମ କଲିକତା, ଆଶୁତୋଷ ମିଉଜିୟମ୍ କଲିକତା ଇତ୍ୟାଦିରେ ଓଡ଼ିଶାର ଯେଉଁସବୁ ମୂର୍ତ୍ତି ଓ ପ୍ରାଚୀନବସ୍ତୁ ରହିଲା, ସେ ସବୁକୁ ଆମ ପିଲାମାନେ ଦେଖିବାର ବା ଗବେଷଣା କରିବାର ଆଉ ସହଜ ସୁଯୋଗ ପାଇବେ କି ? ଓଡ଼ିଶାର ବହୁ ମନ୍ଦିରରୁ ସ୍ୱେରଙ୍ଗନା, ଦର୍ପନନା, ଶାଳଭଞ୍ଜିକା, ତୋରଣଶାଳଭଞ୍ଜିକା, ଅଶୋକଦୋହଦଭଞ୍ଜିକା, ମୁକୁରହସ୍ତା, ଲୀଳାକମଳହସ୍ତା, ଅଭିସାରିକା, ଦର୍ପିତା, ଖଣ୍ଡିତା ଇତ୍ୟାଦି ଅଳସକନ୍ୟା-ମାନେ ଅନ୍ତର୍ହିତା ହୋଇଗଲେଣି ! ବହୁ ମନ୍ଦିରର ପାର୍ଶ୍ୱଦେବତାମାନ ଚୋରିଯିବା ଫଳରେ ପାର୍ଶ୍ୱ ଠଣା (niches) ଖାଲି ପଡ଼ିଛି । ଭାରତ ତଥା ପୃଥିବୀର ଅଦ୍ୱିତୀୟ ଓ ଅଲଭ୍ୟ ଚଣ୍ଡେଶ୍ୱର ମନ୍ଦିରର କାମଦେବମୂର୍ତ୍ତି ଚୋରି ଯାଇଛି ! ଏ ସମସ୍ତ ଚୋରିରେ ଓ ସ୍ଥାନାନ୍ତରରେ ଓଡ଼ିଆମାନଙ୍କ କଅଣ ହାତ ନାହିଁ ? ଓଡ଼ିଆମାନଙ୍କ ବିନା ସହାୟତାରେ ବାହାରର ଲୋକେ ଏ ସବୁକୁ ନେଇପାରି ନ ଥାନ୍ତେ ।

ବିଶ୍ୱବିଦ୍ୟାଳୟମାନଙ୍କ ପରି ଓଡ଼ିଶା ସରକାରଙ୍କ ସାଂସ୍କୃତିକ ବ୍ୟାପାର ବିଭାଗ ଓଡ଼ିଆ ସଂସ୍କୃତିର ଗୋଟିଏ ପ୍ରାଣକେନ୍ଦ୍ର । ମୁଁ ୧୯୪୭ରେ ଯେଉଁ ମିଉଜିୟମ୍‌ରେ ପ୍ରଥମ କ୍ୟୁରେଟର ଥିଲି, ବର୍ତ୍ତମାନ ତାହା ବହୁ ବିଭାଗବିଶିଷ୍ଟ ପ୍ରକାଣ୍ଡ ମିଉଜିୟମ୍ ହୋଇଛି । ମୁଁ ଯେଉଁ Encouragement and Improvement of Oriya Literature ନାମକ ସଂସ୍ଥାର ପ୍ରଥମ ସେକ୍ରେଟେରି ଥିଲି, ତାହା ବର୍ତ୍ତମାନ ଓଡ଼ିଶା ସାହିତ୍ୟ ଏକାଡେ଼ମୀ ହୋଇଛି । ମୁଁ ମିଉଜିୟମ୍ ପାଇଁ ଯେଉଁ ଆଧୁନିକ କଳାର (Modern art) ସାମଗ୍ରୀ କିଣୁଥିଲି, ସେଇଥିରୁ ଲଳିତକଳା ଏକାଡେ଼ମୀର ବିକାଶ ଘଟିଛି । ସଙ୍ଗୀତ ନାଟକ ଏକାଡେ଼ମୀର ବିକାଶ ସହିତ ମୁଁ ଜଡ଼ିତ ନ ଥିଲି । ଯେଉଁ ସାଂସ୍କୃତିକ ବ୍ୟାପାର ବିଭାଗର ଆରମ୍ଭ ସହିତ ମୁଁ ଏହିପରି ସମ୍ପୃକ୍ତ, ତାହା ପ୍ରତି ମୋର ପ୍ରୀତି ସ୍ୱାଭାବିକ; କିନ୍ତୁ ମୁଁ ଏହା ସମ୍ବନ୍ଧରେ କିଛି କହିଲେ ବା ଲେଖିଲେ ଅନେକେ ଭାବନ୍ତି—"ବୁଢ଼ା ଚାକିରି ପାଇଁ ଚେଷ୍ଟା କରୁଛି ।" ସାଂସ୍କୃତିକ ବ୍ୟାପାର ବିଭାଗ ଗୋଟିଏ ପ୍ରକାଣ୍ଡ ବିଭାଗ ହୋଇଗଲାଣି, ଏଣୁ ଏହା-ପାଇଁ ସ୍ୱତନ୍ତ୍ରବ୍ୟବସ୍ଥା ଆବଶ୍ୟକ । ଏହାକୁ ଲୋକସମ୍ପର୍କ ବିଭାଗ ସହିତ ଯୋଡ଼ିରଖିଲେ ଏଥିରୁ ସୁଫଳ ମିଳିବ ନାହିଁ । ଏହାକୁ ବେଳେ ବେଳେ ପରିଦର୍ଶନ କଲେ ଚାଲିବ ନାହିଁ । ଏହାକୁ ସବୁ ସମୟରେ ପରିଦର୍ଶନ କଲେ ହିଁ ଏହା ଠିକ୍ ଚାଲିବ । ଗୋଟିଏ ଅନୁଷ୍ଠାନକୁ ବେଳେ

ବେଳେ ପରିଦର୍ଶନ କଲେ, ତାହାର କପରି ଦୁର୍ଦ୍ଦଶା ଘଟେ; ଏ ସମ୍ବନ୍ଧରେ ମୋର ଗୋଟିଏ ନିଜ ଅଭିଜ୍ଞତା ବର୍ଣ୍ଣନା କରୁଛି ।

ଆମ ଗାଁ ପାଖରେ ଗୋଟିଏ ନିମ୍ନ ପ୍ରାଇମେରୀ ସ୍କୁଲରେ ସେହି ଗ୍ରାମର ଜଣେ ବ୍ୟକ୍ତି ଶିକ୍ଷକ ଥିଲେ । ସେ ଘରକାମ ଓ ବିଲକାମରେ ବ୍ୟସ୍ତ ରହୁଥିଲେ । ଯେତେବେଳେ ଟିକିଏ ଅବସର ପାଉଥିଲେ, ସେତେବେଳେ ସେ ବେତଖଣ୍ଡିଏ ଧରି ସ୍କୁଲଭିତରକୁ ପଶିଯାଉଥିଲେ ଏବଂ ପିଲାମାନଙ୍କୁ କିଛି ନ ପଚାରି ସମସ୍ତଙ୍କୁ ପାହାରେ ଲେଖାଏ ଚଢ଼ାଇ ଦେଉଥିଲେ । ଫଳରେ ପିଲାମାନେ ଠିକ୍ ହେଉ ବା ଭୁଲ ହେଉ ବଡ଼ ପାଟି କରି ଫଳା ପଣକିଆ ଡାକୁ-ଥିଲେ ଏବଂ ବଡ଼ପାଟିରେ ବହି ପଢ଼ ଥିଲେ । ଶିକ୍ଷକ ଦଣ୍ଡେ ରହି ସ୍କୁଲରୁ ବାହାରିଯିବା ଆଗରୁ ପିଲାମାନଙ୍କୁ କହୁଥିଲେ—"ତୁମେମାନେ ପାଠ ପଢ଼ୁଛ କି ନା ମୁଁ ଏହି ପାଖରେ ରହି ଶୁଣୁଛି ଯେ ! ପାଟି ବନ୍ଦ କଲେ ପୁଣି ବେତ ଧରି ପହଞ୍ଚିଯିବି ।" ଏହାପରେ ପିଲାମାନେ ପାଠ ପଢ଼ୁ ନ ଥିଲେ କିମ୍ବା ପାଟି ବନ୍ଦ କରୁ ନ ଥିଲେ । ଶିକ୍ଷକ ଚାଲିଗଲା ପରେ ମାର୍ପିଟ୍ କଳିଗୋଳ ଭିତରେ ସ୍କୁଲଟିକୁ ଚହଲ କରି ରଖୁଥିଲେ । ଗ୍ରାମବାସୀମାନେ ଭାବୁଥିଲେ ଯେ ପିଲାମାନେ ଖୁବ୍ ପାଠ ପଢ଼ୁଛନ୍ତି ।

ସାସ୍କୃତିକ ବ୍ୟାପାର ବିଭାଗଟିକୁ ଏହି ସ୍କୁଲ ପରି ଚଳାଇଲେ ସେଥିରୁ ବେଶି ସୁଫଳ ମିଳିବ ନାହିଁ । ଏ ବିଭାଗର କର୍ମଚାରୀମାନଙ୍କ ଦରମା ଓ ପଦୋନ୍ନତି ବିଷୟ ମଧ୍ୟ ବିଚାର କରିବା ବାଞ୍ଛନୀୟ । ସବୁ ବିଭାଗର କର୍ମଚାରୀମାନଙ୍କ ମଧ୍ୟରୁ ଶତକଡ଼ା ୧୫ରୁ ୨୦ ଜଣ ଉପର ପାହ୍ୟାକୁ ଯାଉଛନ୍ତି; କିନ୍ତୁ ସାସ୍କୃତିକ ବ୍ୟାପାର ବିଭାଗରେ ଏ ବ୍ୟବସ୍ଥା ନାହିଁ । ବ୍ୟକ୍ତିଗତ ଅଭିଜ୍ଞତାରୁ ମୁଁ ଜାଣେ ଯେ ମିଉଜିୟମ କାମ କଲେଜ କାମଠାରୁ କଠିନ । ମୁଁ ଯେତେବେଳେ ମିଉଜିଅମ୍ କାମ ଛାଡ଼ି ପୁଣି କଲେଜ କାମରେ ଯୋଗଦେଲି, ସେତେବେଳେ ପ୍ରଫେସର ବିଧୁଭୂଷଣ ଦାସ (ବର୍ତ୍ତମାନ ଡି. ପି. ଆଇ.) ମୋତେ ପଚାରିଲେ—"ଉଭୟ କାମ ମଧ୍ୟରେ କି ତଫାତ୍ ଦେଖିଲେ ?" ମୁଁ କହିଲି—"ମିଉଜିଅମ୍ କାମଟା ହେଉଛି ପାଲା, ଆଉ କଲେଜ କାମଟା ହେଉଛି କୀର୍ତ୍ତନ । ପାଲାରେ ଜଣେ ଭଲ ଗାଇ ନ ପାରିଲେ ଧରାପଡ଼ିଯାଏ, କିନ୍ତୁ କୀର୍ତ୍ତନରେ ଧରାପଡ଼େ ନାହିଁ ।"

କୌଣସି କୌଣସି ବନ୍ଧୁ ମୋତେ କହନ୍ତି ଯେ ଅନ୍ୟ ରାଜ୍ୟମାନଙ୍କରେ ମଧ୍ୟ ଅପକର୍ମ ଅଛି; କିନ୍ତୁ ମୁଁ କାହିଁକି କେବଳ ଆମ ରାଜ୍ୟର ଅପକର୍ମର ତୀବ୍ର ସମାଲୋଚନା କରୁଛି । ସେମାନେ ଲକ୍ଷ୍ୟ କରୁ ନାହାନ୍ତି ଯେ ଓଡ଼ିଶାର ଜନସଂଖ୍ୟା ଭାରତର ଜନସଂଖ୍ୟାର ପଚିଶ ଭାଗରୁ ଭାଗେ ହେଲେ ମଧ୍ୟ ଓଡ଼ିଶା ସମସ୍ତ ଅପକର୍ମରେ ପ୍ରଥମ ଶ୍ରେଣୀରେ ପ୍ରଥମ ହେଉଛି, କିନ୍ତୁ ସତ୍କର୍ମରେ ପାଞ୍ଚ ନମ୍ବର ସୁଦ୍ଧା ରଖିପାରୁ ନାହିଁ । ଏହା ହିଁ ମୋର ତୀବ୍ର ସମା-ଲୋଚନାର କାରଣ । ଅଶ୍ଳୀଳତା ସମସ୍ତ ରାଜ୍ୟରେ ଅଛି, କିନ୍ତୁ କେହି ଏହାକୁ ଗଣପ୍ରଚାର ମାଧ୍ୟମରେ ଜାତୀୟ ସଂସ୍କୃତି ରୂପେ ପ୍ରଚାର କରୁ ନାହିଁ । ମୁଁ ଶୁଣିଛି ଯେ ପେରିସ୍ ନଗରୀରେ

ନଗ୍ନଚିତ୍ରର ସିନେମା ରହିଛି, କିନ୍ତୁ ଏହା "କେତେକ ବ୍ୟକ୍ତିଙ୍କ" ପାଇଁ ଉଦ୍ଦିଷ୍ଟ । ଗଣପ୍ରଚାର ମାଧ୍ୟମରେ ଯାହା ପ୍ରଚାର କରାଯାଏ, ତାହା "ସମସ୍ତ ବ୍ୟକ୍ତିଙ୍କ" ପାଇଁ ଉଦ୍ଦିଷ୍ଟ । ଯବନିକାର ଅନ୍ତରାଳରେ ବହୁ ଅଶ୍ଳୀଳତା ଘଟିଯାଉଛି, କିନ୍ତୁ କୌଣସି ଜାତି ଜାତୀୟ ସ୍ତରରେ ଏହାକୁ ଜାତୀୟ ସଂସ୍କୃତି ବୋଲି ପ୍ରଚାର କରୁନାହିଁ । ଓଡ଼ିଶାରେ ଜାତୀୟସ୍ତରରେ ନାରୀକୁ ଅଶ୍ଳୀଳତା ମଧ୍ୟକୁ ଟାଣି ଅଣାଯାଉଛି । କିନ୍ତୁ କେତେକାଂଶରେ ପ୍ରତିବେଶୀବିଦ୍ୱେଷ ପରବଶରେ ଓ କେତେକାଂଶରେ କବିମାନଙ୍କ ପ୍ରତି ଅନ୍ଧଭକ୍ତିରେ ବା ଭ୍ରାନ୍ତ ଧର୍ମଧାରଣାରେ କେତେକ ସଂସ୍କୃତି ବ୍ୟବସାୟୀ ଓଡ଼ିଆ ଏହାକୁ ଜାତୀୟ ସଂସ୍କୃତି ବୋଲି ପ୍ରଚାର କରିଛନ୍ତି ଓ କରୁଛନ୍ତି । ଏହି ପ୍ରଚାରକୁ ରାଜଶକ୍ତି ସାହାଯ୍ୟ କରୁଛି । ନାରୀ ଯବନିକାର ଅନ୍ତରାଳରେ ଥିଲେ ହେଁ ଯୁଗେ ଯୁଗେ ସୃଷ୍ଟି ଓ ସଂହାରଣୀ ଶକ୍ତିରୂପେ କାର୍ଯ୍ୟ କରୁଛି । ଓଡ଼ିଶାର ବ୍ୟାସ ଆଦିକବି ସାରଳା ଦାସ ଏହା ବୁଝିଥିଲେ । ତାଙ୍କର ତିନୋଟି କାବ୍ୟରେ ସୀତା, ଦୁର୍ଗା ଓ ଦ୍ରୌପଦୀଙ୍କୁ ସୃଷ୍ଟି ଓ ସଂହାରଣୀ ଶକ୍ତିରୂପେ ଚିତ୍ରିତ କରି ଯାଇଛନ୍ତି । ଓଡ଼ିଶାର ପରବର୍ତ୍ତୀ ଯୁଗରେ ନାରୀକୁ ଯବନିକାର ଅନ୍ତରାଳରୁ କାଢ଼ିଆଣି ତାହାର ଗହନମନର ଗୋପନୀୟ ରତିକ୍ରିୟାକୁ କୁତ୍ସିତ ଭାବରେ ଚିତ୍ରିତ କରାଯାଉଛି । ଐତିହାସିକ ଦୃଷ୍ଟିରୁ ଦେଖିଲେ ଜଣାଯାଏ ଯେ ନାରୀ ହିଁ ଓଡ଼ିଆମାନଙ୍କ ଅଧଃପତନର କାରଣ ହୋଇଛି । ନାରୀ ଗୋଟିଏ ଜାତିକୁ ଉପରକୁ ଉଠାଇଦିଏ କିମ୍ବା ତଳକୁ ଖସାଇଦିଏ ।

ମୋର ଏହି ଲେଖାର ଯେଉଁ ପ୍ରତିକ୍ରିୟା ହେବ, ତାହା କଅଣ ମୁଁ ନିଜେ ଅନୁମାନ କରିପାରୁନାହିଁ ? ୧୫ । ୧୦ । ୫୬ ତାରିଖର 'ସମାଜ'ରେ ପ୍ରକାଶିତ ମୋର "ଓଡ଼ିଶାର ଇତିହାସ ଓ ଐତିହାସିକ ଉପାଦାନ" ଶୀର୍ଷକ ପ୍ରବନ୍ଧ ଯେଉଁ ପ୍ରତିକ୍ରିୟା ସୃଷ୍ଟି କରିଥିଲା, ତାହା କଅଣ ମୁଁ ଭୁଲିଯାଇଛି ? ସମସ୍ତ ଜାଣି ମୁଁ ଏ ଗ୍ରନ୍ଥ ଲେଖିଛି । କଳନା କରି ଦେଖିଛି ଯେ ପଚାଶ ବର୍ଷ ପରେ ବର୍ତ୍ତମାନ ଓଡ଼ିଶାର ବହୁ ବୁଦ୍ଧିଜୀବୀ ଓ ବହୁ ତରୁଣ-ତରୁଣୀ ମୋ ଲେଖାର ସତ୍ୟତା ଉପଲବ୍‌ଧି କରୁଛନ୍ତି । ଏହାହିଁ ମୋ ଲେଖାର ଯଥାଲାଭ । ତାହା ନ ହେଲେ ମୁଁ ୧୯୪୪ରୁ ଓଡ଼ିଶାକୁ ଭଲଭାବରେ ଚିହ୍ନିଛି । ଏହିବର୍ଷ Political Status of the Feudatory States of Orissa and Chhatisgarh ନାମକ ପୁସ୍ତକ ଲେଖିବା ପରଠାରୁ ମୁଁ ଯେଉଁ ଦୟନୀୟ ଅବସ୍ଥାରେ ଏ ପର୍ଯ୍ୟନ୍ତ ଚାଲିଆସିଛି, ତାହାର କରୁଣ କାହାଣୀ ଏ ପୁସ୍ତକରେ ଲେଖିଛି । ୧୯୪୭ରୁ ଭାରତରେ ସ୍ୱାଧୀନତା ଆସିଥିଲେ ହେଁ ସାଧାରଣ ନରନାରୀର ଉପଭୋଗ୍ୟ ବସ୍ତୁରସମତା ଓ ଦଣ୍ଡସମତା ମୋ ପ୍ରତି ପ୍ରଯୁଜ୍ୟ ହୋଇ ନାହିଁ । ମୋତେ ହାତରେ ନମାରି ଭାତରେ ମରାହୋଇଛି । ମୋ ବିରୁଦ୍ଧରେ ନାନା ମିଥ୍ୟାପବାଦ ପ୍ରଚାର କରାହୋଇ ମୋ ମୁହଁକୁ ପୋଡ଼ି ଦିଆଯାଇଛି । ଲେଖକ ହିସାବରେ ମୋର ସୃଜନୀଶକ୍ତିକୁ ବିକଶିତ ହେବାକୁ ଦିଆଯାଇ ନାହିଁ । ମୋର ଦୋଷଟା ଯେ କଅଣ, ମୋତେ ନିର୍ଦ୍ଦିଷ୍ଟଭାବରେ କେହି କହି ନାହାନ୍ତି । ଘୋର ନୈରାଶ୍ୟ, ଦୁଃଖ ଓ ଅପମାନ ମଧ୍ୟରେ ମୁଁ ଖାଲି କାନ୍ଦି କାନ୍ଦି ଗାଇଛି—

## [illegible]

ସବୁ ବେଦନାର ଜନାନ୍ତ ସଙ୍ଗତେ ତବ ଆରାଧନା କରୁଛୁ ହେ
ଠୁଳ କରି ସେତେ ନୟନଲୋତକ ତବ ପଦତଳେ ଦରୁଛୁ [illegible]
ମାନ ଅଭିମାନ କରିଦେଲି ଚୂନା,
ଚନା ଖୋଜି ଯାଇ ପାଇଲି ମୁଁ ସୁନା !

କିନ୍ତୁ ମୁଁ ମୋର ଆତ୍ମସମ୍ମାନ ଛାଡ଼ି ନାହିଁ । ସୁଧୀ ପାଠକମାନେ ମୋ ଜୀବନର ଆଖ୍ୟାୟିକା ପଢ଼ି ଜାଣିବେ ଯେ ବାଲ୍ୟକାଳର ଦୁର୍ଦ୍ଦିନରେ ମଧ୍ୟ ମୁଁ ଆତ୍ମସମ୍ମାନ ପ୍ରତି ସଚେତନ ଥିଲି । ମୁଁ ବିଶ୍ୱାସ କରେ ଯେ ଏହି ହେତୁରୁ ଅଦୃଶ୍ୟ କର୍ଣ୍ଣଧାର ମୋତେ ଅନ୍ଧକାରରୁ ଆଲୋକକୁ ଟାଣି ଆଣିଥିଲେ । ଗୁଣ୍ଟୁର ଜିଲାର କୋଣ୍ଡବିଡ଼ୁ ଦୁର୍ଗରେ ଅବରୁଦ୍ଧ ଓଡ଼ିଆ ସୈନ୍ୟମାନେ ଜଳାଭାବରେ ଓ ଖାଦ୍ୟାଭାବରେ ପ୍ରାଣତ୍ୟାଗ କରିଥିଲେ, ମାତ୍ର ଆତ୍ମସମର୍ପଣ କରି ନ ଥିଲେ । କୃଷ୍ଣଦେବ ରାୟଙ୍କ ସେନାପତି ସାଲୁବ ତିମ୍ମ ଓ ତାଙ୍କ ସୈନ୍ୟମାନେ ଦୁର୍ଗ-ଦ୍ୱାର ଭାଙ୍ଗି ଓଡ଼ିଆ ସୈନ୍ୟମାନଙ୍କ ଶବ ଓ କେତେକ ଜୀବନ୍ତ ସାମନ୍ତଙ୍କୁ ହିଁ ପାଇଥିଲେ ମୁଁ ଏହି ମହାନ୍ ଐତିହ୍ୟର ଜଣେ ଦାୟାଦ ।

ମୁଁ ସାଂସ୍କୃତିକ କ୍ଷେତ୍ରରେ ନିଷ୍ଠାସହକାରେ ପଚାଶ ବର୍ଷ କାର୍ଯ୍ୟକରି ବର୍ତ୍ତମାନ ଜୀବନର ଏପରି ଏକ ଅବସ୍ଥାରେ ଆସି ପହଞ୍ଚିଛି, ଯେତେବେଳେ କି ମୋର କର୍ମଶକ୍ତି ନିତାନ୍ତ ସଙ୍କୁଚିତ ହୋଇପଡ଼ିଛି । ପରଲୋକଗତ ମୋର ସମସ୍ତ ଭାଇଭଉଣୀ ମଧ୍ୟରୁ କେହି ୭୦ ବର୍ଷରୁ ଅଧିକ ବଞ୍ଚି ନ ଥିଲେ । ଏଣୁ ମୁଁ କାର୍ଯ୍ୟଯୋଜନା କରି ଅର୍ଥ ଓ ସମ୍ମାନ ପାଇଁ ଆଶାୟୀ ହେଉ ନାହିଁ । ମୋତେ ଯଥେଷ୍ଟ ମିଥ୍ୟାପବାଦ ଓ ଅପମାନ ଦିଆହୋଇଛି; ଆଉ ଅଧିକ ଦିଆ ନ ହେଉ । ମୁଁ ଜଣେ ନିତାନ୍ତ ନିର୍ବୋଧ ଓ ଏକଜିଦିଆ ଲୋକ । ଜୀବନରେ ଅନ୍ତତଃ ଦଶଥର ମୋର ପକେଟ୍‌ମାର ହୋଇଛି, ଦୁଇଟି ଘଡ଼ି ଓ ବହୁ ଫାଉଣ୍ଟେନ୍ ପେନ୍ ମୋ ଦେହରୁ ହରଣଚାଲ ହୋଇଯାଇଛି । ମୁଁ କଅଣ ଏଡ଼େ ବୋକା ଯେ ସମସ୍ତଙ୍କୁ ଠକି ଦେଇ ପାରିଛି ? ମୁଁ ମୋର ଆଦର୍ଶରୁ ବିଚ୍ୟୁତ ହୁଏ ନାହିଁ । ଏଣୁ ଦୁଃଖ ପାଏଁ । ମୁଁ କେବଳ ମୋର ସମସ୍ତ ବିପର୍ଯ୍ୟୟ ପାଇଁ ଦାୟୀ । ମୁଁ ମୋର ବିପର୍ଯ୍ୟୟ ପାଇଁ କାହାରିକୁ ଦୋଷୀ କରୁ ନାହିଁ । ମୋର ପ୍ରାପ୍ୟ ମଜୁରିରୁ ଯାହା ବୁଡ଼ିଗଲା, ସେଥିପାଇଁ ମଧ୍ୟ ମୋର ଶୋଚନା ନାହିଁ । ଯେତେବେଳେ ଯେଉଁଆଡ଼େ ପବନ ବହିଲା, ସେହିଆଡ଼େ ଯଦି ଛତା ଧରିଥାନ୍ତି, ତେବେ ମୋର କୌଣସି ବିପର୍ଯ୍ୟୟ ଘଟି ନ ଥାନ୍ତା; କିନ୍ତୁ ମୁଁ ତାହା କରି ନାହିଁ କିମ୍ବା କରିପାରିବି ନାହିଁ । ମୋତେ ପଶାଖେଳର କାଠି ବା ଗୁଟି ରୂପେ ଆଉ କେହି ବ୍ୟବହାର ନ କରନ୍ତୁ, ଏହା ହିଁ ମୋର ସମସ୍ତଙ୍କ ପାଖରେ ଯୋଡ଼କରରେ ପ୍ରାର୍ଥନା । ସମସ୍ତ ବିପର୍ଯ୍ୟୟ ପରେ ଯାହା ପାଇଛି, ସେଥିରେ ମୁଁ ସନ୍ତୁଷ୍ଟ । ବାଲ୍ୟକାଳରେ ମାସିକ ଦୁଇଟଙ୍କା ଦରମାର ଚାକିରି ପାଇ ନ ପାରି ମୁଁ କରଣରେ ଫେରିଥିଲି । ପ୍ରାଥମିକ ସ୍କୁଲର ଜଣେ ଶିକ୍ଷକ ହେବା ମୋର ଜୀବନର ଉଚ୍ଚତମ ଲକ୍ଷ୍ୟ ଥିଲା । ବର୍ତ୍ତମାନ ମୋର ଆର୍ଥିକ ଓ ମାନସିକ ଅବସ୍ଥାରେ କଳ୍ପନା

ପରିବର୍ତ୍ତନ ଘଟିଛି । ମୋର ପୁଅ ଅଛନ୍ତି, ପେନ୍‌ସନ ଅଛି ଓ ଖଣ୍ଡିଏ ଘର ଅଛି । ଏଣୁ ମୁଁ ବଞ୍ଚିଥିବା ପର୍ଯ୍ୟନ୍ତ ଗାଇବି—

ଜୀବନପାତ୍ର ମୋ ଭରିଛ କେତେମତେ
ନ ଦେଲ କିଛି ବୋଲି କହିବ କି ହେ ଆଉ ?
ଜୀବନ ପ୍ରିୟତମ ହରିଛ ମୋ ଭରମ
ତରଣୀ ମୋର ଭବ ସାଗରେ ବହିଯାଉ ।
କୂଳର ଜନପ୍ରାଣୀ କେତେ ମିଳାଅ ଆଣି
ନ ସ୍ୱପ୍ନ ପଲକରେ ଲୁଚୁଅ ଜାଣି ଜାଣି,
ବୃଥା ମୁଁ ଅଭିମାନୀ ହୃଦେ ଧରଇ ଟାଣି
ମରତ ପ୍ରବାସୀ ମୁଁ ନ ଜାଣି ଆଣେ ଦାଉ ।୧।

ମାନସହଂସ ମୁଁ ମାନସେ ଯିବ ଉଡ଼ି
ମୋ ଦୋଷେ ପଥ ବୁଢ଼ି ଭରମେ ଅବିରତ,
ଅଳପ ତୃଷା କ୍ଷୁଧା ଲଭି ତୁମର ସୁଧା
ତୃପତ ନହେଲି, ତେବେ ଲୋଡ଼ଇ ଏ ମରତ !
ନିଜ ବାସନା-ଜାଲେ ବିକଳ ବିଧିତ
ତମିର ଅଙ୍କନେ ମିଳେ କି ଅମୃତ ?
ଛାଡ଼ିବ ଦୂରେ ଯିବ ପାରିବାରେ ଭାସିବ
ଲଙ୍ଘି ହିମଗିରି ଯିବ ଗୋ ବେଳ ଥାଉଁ ।୨।

